# ଅମୃତ ବାଣୀ





ମା ମଙ୍ଗଳା ମନ୍ଦିର ପରିଚାଳନା ସମିତି,
ଖଡ଼ଗପ୍ରସାଦ ଆନୁକୂଲ୍ୟରେ
ମା ମଙ୍ଗଳାଙ୍କ ନୂତନ ମନ୍ଦିର ଏବଂ ବିଗ୍ରହ ପ୍ରତିଷ୍ଠା ମହୋତ୍ସବ
ଉପଲକ୍ଷେ ତା ୩.୩. ୨୦୦୪ ରିଖରେ

**ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବଙ୍କ ଦ୍ୱାରା**

ଉନ୍ମୋଚିତ ଜ୍ଞାନ-ଯଜ୍ଞ-ପ୍ରସାଦ ।

ମୂଲ୍ୟ - ନିତ୍ୟ ସ୍ମରଣ ଓ ଆଚରଣ

Digitized by srujanika@gmail.com



# ଶ୍ରୀ ଶ୍ରୀ ସର୍ବମଙ୍ଗଳା ସ୍ତୁତି

ପାତକ ହାରିଣି ଦେବି ! ପ୍ରଣମାମି ହରପ୍ରିୟେ ।
ମୂନାତି ସ୍ଥାନମସ୍ମାଙ୍କ ଅଧିଷ୍ଠାନେ ନହି ତବ ।।

ଅଶୁଭଂ ନିଧନଂ ଯାତୁ ପ୍ରଣମାମି ବିପଦ୍କ୍ଷୟେ ।
ଏତଦ୍ ମେ ପ୍ରାର୍ଥନା ଦେବି ! ତ୍ୱମେକଂ ଶରଣଂ ମମ ।।

ଭକ୍ତିଂ ଧୈର୍ଯ୍ୟଂ ଗୁଣଂ ଦେହି ମହ୍ୟଂ ତ୍ୱଂ ପରମେଶ୍ୱରି ।
ତେନ ହୀନୋ ମନୁଷ୍ୟାଣାଂ ସଦା ଦେଶ ହିତେ ରତିଂ ।।

ସମ୍ପତଏ ଲୋକାସର୍ବେ ପ୍ରଣମନ୍ତି ପଦାମ୍ବୁଜମ୍ ।
ଏତଦ୍ ମେ ପ୍ରାର୍ଥନା ଦେବି ! ତ୍ୱମେବଂ ଶରଣଂ ମମ ।।

Digitized by srujanika@gmail.com



ଗଜପତି ମହାରାଜା

**ଶ୍ରୀ ଦିବ୍ୟସିଂହ ଦେବ**

ଶ୍ରୀନହର, ପୁରୀ

ତା ୦୩.୦୩.୨୦୦୪

ଦିବ୍ୟ ଆତ୍ମନ୍,

ଓଁ ନମୋ ଭଗବତେ ବାସୁଦେବାୟ

ବର୍ତ୍ତମାନ ଆମର ବ୍ୟକ୍ତିଗତ, ପାରିବାରିକ, ସାଂସାରିକ ଓ ସାମାଜିକ ଜୀବନରେ ଅଶାନ୍ତି, ବିଶୃଙ୍ଖଳା, ଅଭାବ ଓ ସମସ୍ୟାର ମୂଳ କାରଣ ହେଉଛି ଆଧ୍ୟାତ୍ମିକ ନୈତିକ ଶିକ୍ଷା ଏବଂ ଆଚରଣ ଅଭାବ । ଯୁଗେ ଯୁଗେ ପୁଣ୍ୟ ଭାରତ ଭୂମିର ମହାନ୍ ବୈଦିକ ସଂସ୍କୃତି, ଧର୍ମଶାସ୍ତ୍ର, ମୁନି-ଋଷି ଓ ମହାପୁରୁଷମାନେ ଭଗବତ୍ ପ୍ରାପ୍ତିକୁ ଜୀବନର ପରମ ଲକ୍ଷ୍ୟ ରୂପେ ଦର୍ଶାଇ ବିଶ୍ୱ ମାନବ ସମାଜକୁ ସେହି ମହାନ ଆଧ୍ୟାତ୍ମିକ ପଥରେ ଆଗେଇ ଯିବାକୁ ଦିଗଦର୍ଶନ ଦେଇ ଯାଇଛନ୍ତି । ସାମ୍ପ୍ରତିକ ଆଧୁନିକ ଓ ଭୌତିକ ସଂସ୍କୃତିର ଅନୁସରଣରେ ଆମେ ସେହି ମହାନ୍ ଆଧ୍ୟାତ୍ମିକ ପଥରୁ ଦୂରେଇ ଯାଉଛେ, ଯାହା ଦ୍ୱାରା ଆମର ବ୍ୟକ୍ତିଗତ ଓ ସାମାଜିକ ଜୀବନରେ ବିଭିନ୍ନ ପ୍ରକାର ବିଶୃଙ୍ଖଳା ଓ ଅଶାନ୍ତି ଦେଖା ଦେଉଛି ।

ଏଣୁ ଆସନ୍ତୁ ! ଆମର ଜୀବନକୁ ଏବଂ ଜୀବନର ପ୍ରତ୍ୟେକ କର୍ମକୁ ସେହି ମହାନ୍ ଆଧ୍ୟାତ୍ମିକ ଶିକ୍ଷା ଓ ସାଧନାରେ ଅନୁପ୍ରାଣିତ କରି ଏକ ସୁନ୍ଦର, ସୁସ୍ଥ ଓ ପ୍ରଗତିଶୀଳ ସମାଜ ନିର୍ମାଣରେ ବ୍ରତୀ ହେବା ।



Digitized by srujanika@gmail.com

ଓଁ ଶାନ୍ତି ଶାନ୍ତି ଶାନ୍ତିଃ ।

ସଂଲଗ୍ନ 'ଅମୃତ ବାଣୀ'ରେ ଦର୍ଶାଯାଇଥିବା ଜାତୀୟ ଆଚରଣ ବିଧିର ୧୪ଟି ମୂଲ୍ୟବାନ୍ ଉପଦେଶ ଏବଂ ପରମପୂଜ୍ୟ ସ୍ୱାମୀ ଶିବାନନ୍ଦ ସରସ୍ୱତୀ ମହାରାଜାଙ୍କ ଦ୍ୱାରା ସଂକଳିତ ଆମର ପ୍ରାଚୀନ ଆଧ୍ୟାତ୍ମିକ ସଂସ୍କୃତିର ସାର ସ୍ୱରୂପ ୨୦ଟି ପ୍ରଧାନ ଆଧ୍ୟାତ୍ମିକ ଉପଦେଶ ଓ ସାଧନା ତତ୍ତ୍ୱ ଯଦି ଆମ୍ଭେମାନେ ଆମ୍ଭ ଜୀବନରେ ବାସ୍ତବରେ ଆଣି ପାରିବା, ତାହାହେଲେ ଆମ ଜୀବନକୁ ଏକ ଦିବ୍ୟ ଜୀବନରେ ପରିଣିତ କରିବା ସଙ୍ଗେ ସଙ୍ଗେ ପରମାନନ୍ଦ ପ୍ରାପ୍ତି ଓ ଭଗବତ୍ ସତ୍ତା ଉପଲବ୍ଧି କରିପାରିବା ।

ଏହି ମହତ ଉଦ୍ଦେଶ୍ୟ ନେଇ ମା ମଙ୍ଗଳା ମନ୍ଦିର ପରିଚାଳନା ସମିତି ଖଡ଼ଗପ୍ରସାଦ, ଢେଙ୍କାନାଳ ଆନୁକୂଲ୍ୟରେ ତା୨୭.୦୨.୨୦୦୪ ରିଖ ରୁ ତା୦୫.୦୩.୨୦୦୪ ରିଖ ପର୍ଯ୍ୟନ୍ତ ଖଡ଼ଗପ୍ରସାଦ ଗ୍ରାମ ସ୍ଥିତ ମା ମଙ୍ଗଳାଙ୍କ ନୂତନ ମନ୍ଦିର ଓ ବିଗ୍ରହ ପ୍ରତିଷ୍ଠା ମହୋତ୍ସବ ଉପଲକ୍ଷେ ନାମଯଜ୍ଞ ଓ ପ୍ରବଚନ କାର୍ଯ୍ୟକ୍ରମ ଅନୁଷ୍ଠିତ ହେବା ଏକ ଆନନ୍ଦର ବିଷୟ । ଏହିଭଳି ଆଧ୍ୟାତ୍ମିକ ଚେତନା ଜାଗରଣ ନିମନ୍ତେ, ବିଭିନ୍ନ କାର୍ଯ୍ୟକ୍ରମ ପ୍ରତ୍ୟେକ ଅଞ୍ଚଳରେ ଆୟୋଜନ କରିବା ପାଇଁ ଜନସାଧାରଣଙ୍କୁ ବିନମ୍ର ଅନୁରୋଧ ।

ଶ୍ରୀ ଜଗନ୍ନାଥ ମହାପ୍ରଭୁ ଏବଂ ଶ୍ରୀ ସଦ୍‌ଗୁରୁଦେବ ଆପଣଙ୍କୁ ଏହି ଆଧ୍ୟାତ୍ମିକ ପଥରେ ଆଗେଇ ନିଅନ୍ତୁ — ଏହା ହିଁ ଏହି ସେବକର ବିନମ୍ର ପ୍ରାର୍ଥନା ।

ହରି ଓଁ ତତ୍ ସତ୍

ଶ୍ରୀ ଶ୍ରୀ ଜଗନ୍ନାଥ ଚରଣାଶ୍ରିତ
ଦିବ୍ୟସିଂହ ଦେବ



Digitized by srujanika@gmail.com

ଅମୃତବାଣୀ - ୧

# ଭାରତୀୟ ନାଗରିକଙ୍କ ନିମନ୍ତେ ଆଚରଣ ବିଧି :

୧. **ଦେଶାତ୍ମବୋଧ** - ମାତୃଭୂମି ଆମ୍ଭମାନଙ୍କର ସର୍ବପ୍ରଥମ ଓ ସର୍ବୋଚ୍ଚ ଧ୍ୟେୟ ନିଧାନ । ତାହାରି ହିତ ଆମର କଲ୍ୟାଣ । ସେଥିପାଇଁ ଦେଶ ନିମନ୍ତେ ସ୍ୱେଚ୍ଛାରେ ଆମେ ପ୍ରାଣବଳି ଦେବା ପାଇଁ ପ୍ରସ୍ତୁତ ରହିବା । ଆମର ପିଲାମାନଙ୍କର ଓ ପରିବାର ସଦସ୍ୟମାନଙ୍କ ମଧ୍ୟରେ ଦେଶପ୍ରେମ ଦେଶାତ୍ମବୋଧ ମନୋବୃତ୍ତି, ଦେଶ ଓ ଦେଶର ନାଗରିକମାନଙ୍କ ସେବା ନିମନ୍ତେ ଦୃଢ଼ ଧାରଣା ନିବଦ୍ଧ କରାଇବା ।

୨. **କର୍ତ୍ତବ୍ୟ** - ଈଶ୍ୱରଙ୍କ ପ୍ରତି ଭକ୍ତି ଏବଂ ସଦାଚାରୀ ହେବା ଆମର ଶ୍ରେଷ୍ଠ ଓ ସର୍ବ ପ୍ରଧାନ କର୍ତ୍ତବ୍ୟ । ନୀତିପୂର୍ଣ୍ଣ ଜୀବନଯାପନ ଦେଶ ନିମନ୍ତେ ସବୁଠାରୁ ଉତ୍କୃଷ୍ଟ ମୂଲ୍ୟବାନ ସେବା ।

୩. **ଚରିତ୍ର** - ଚରିତ୍ର ଶ୍ରେଷ୍ଠ ସମ୍ପଦ । ନିଷ୍କଳଙ୍କ, ସଚ୍ଚୋଟ ନାଗରିକ ଆମ ଦେଶର ମୂଲ୍ୟବାନ ସମ୍ପତ୍ତି । ଏହା ଏକାନ୍ତ ମୂଲ୍ୟବାନ ଏବଂ ଅତ୍ୟାବଶ୍ୟକ । ସେଥି ନିମନ୍ତେ ଶୁଦ୍ଧ ଚରିତ୍ର ଗଠନ ପାଇଁ ସର୍ବାଦୌ ଧ୍ୟାନ ଦିଆଯିବା ଉଚିତ । କାରଣ ତାହାରି ଉପରେ ଆମ ଦେଶର କଲ୍ୟାଣ ଓ ଭବିଷ୍ୟତ ନିର୍ଭର କରେ ।

୪. **ସ୍ୱାସ୍ଥ୍ୟ** - ସ୍ୱାସ୍ଥ୍ୟ ସଫଳତାର ମୂଳଭିତ୍ତି । ସ୍ୱାସ୍ଥ୍ୟ ହିଁ ସମ୍ପଦ । ଚରିତ୍ର ପରେ ଏହା ଦେଶର ସର୍ବୋତ୍ତମ ଜାତୀୟ ସମ୍ପଦ । ଦେଶର ନାଗରିକ ହେତୁ ଚରିତ୍ର ଗଠନ ଏବଂ ସ୍ୱାସ୍ଥ୍ୟର ସୁରକ୍ଷା ଆମର ପ୍ରାଥମିକ କର୍ତ୍ତବ୍ୟ ।

୫. **ସଦ୍‌ଗୁଣ** - ଆମେ ସମସ୍ତେ ଏକତ୍ରିତ ହୋଇ ଜୁଆ ଖେଳ; ମଦ୍ୟପାନ,



Digitized by srujanika@gmail.com

ନିଶାସେବନ, ଧୂମପାନ, ତାମ୍ବୁଲ ସେବନ ପ୍ରଭୃତି ମନ୍ଦ ଅଭ୍ୟାସର ନିବାରଣ କରିବା ଓ ଲାଞ୍ଚ, ଦୁର୍ନୀତି, ସ୍ୱାର୍ଥପରତା, ବ୍ୟଭିଚାର, ଅସାଧୁତା ଏବଂ ଅସଦାଚାର ଭଳି ମନ୍ଦ ପ୍ରକୃତିକୁ ମୂଳପୋଛ କରିବା । ଦେଶ ପ୍ରତି ଦ୍ରୋହ କରିବା ଅପରାଧ ଏବଂ ଅକ୍ଷମଣୀୟ ପାପ ।

୬. **ସାର୍ବଜନୀନ ସମ୍ପତ୍ତି** - ହେ ନାଗରିକଗଣ ! ଆମ୍ଭେମାନେ ସର୍ବସାଧାରଣ ସମ୍ପତ୍ତିର ତତ୍ତ୍ୱାବଧାରକ । ତେଣୁ ଜାତୀୟ ସମ୍ପଦକୁ ଆମେ ନଷ୍ଟ, ଦୁର୍ବ୍ୟବହାର, ଚୋରି କିମ୍ବା ଧ୍ୱଂସ କରିବା ନାହିଁ । ଏହାକୁ ସମ୍ମାଦର ଓ ଯତ୍ନର ସହିତ ରକ୍ଷା କରିବା । ଆମ ଦେଶକୁ ସୁସ୍ଥ ଓ ପରିଷ୍କୃତ ରଖିବା । ଏହା ଆମର ପବିତ୍ର କର୍ତ୍ତବ୍ୟ ।

୭. **ଏକ ପରିବାର** - ଦେଶର ସମସ୍ତ ନାଗରିକ ଆମର ଭାଇ ଭଉଣୀ - ଏହି ଭ୍ରାତୃଭାବକୁ ଉପଲବ୍ଧି କରିବା । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଭଲ ପାଇବା ଏବଂ ଏକତ୍ୱବୋଧ କରିବା । କାରଣ ଆମେ ଗୋଟିଏ ପରିବାର ।

୮. **ଧର୍ମ** - ପ୍ରତ୍ୟେକ ଧର୍ମ, ଧର୍ମନୀତି ଓ ବିଶ୍ୱାସକୁ ଆମେ ସମାନ ପ୍ରାଧାନ୍ୟ ଦେବା । ସମସ୍ତଙ୍କୁ ସ୍ୱଧର୍ମ ବିଶ୍ୱାସର ଭାଇମାନଙ୍କ ପରି ଭଲ ପାଇବା । ଆମେ ନିଜେ ଅନ୍ୟଠାରୁ ଯେଉଁଭଳି ବ୍ୟବହାର ଆଶା କରୁଁ, ଅନ୍ୟମାନଙ୍କୁ ସେହିଭଳି ବ୍ୟବହାର କରିବା ।

୯. **ଅହିଂସା** - କୌଣସି ହିଂସାତ୍ମକ ଘୃଣ୍ୟ କାର୍ଯ୍ୟକୁ ସମ୍ପୂର୍ଣ୍ଣ ରୂପେ ତ୍ୟାଗ କରନ୍ତୁ । ଦେଶର ସୁଯଶରେ ଏହା କଳଙ୍କ । ଏହା ଆତ୍ମଘାତୀ ଏବଂ ଦେଶର ମଙ୍ଗଳ ଓ ସମୃଦ୍ଧିରେ ବିରାଟ ପ୍ରତିବନ୍ଧକ । ଆମ ଦେଶର ଆଦର୍ଶର ଏହା ସମ୍ପୂର୍ଣ୍ଣ ବିରୋଧୀ ।

୧୦. **ମିତବ୍ୟୟତା** - ସରଳ ଜୀବନ ଯାପନ ଓ ମହତ ଚିନ୍ତା ଆମେ ଗ୍ରହଣ କରିବା । ଅପବ୍ୟୟ କିମ୍ବା ଅପଚୟ କରିବା ନାହିଁ । ମିତବ୍ୟୟୀ



Digitized by srujanika@gmail.com

ହେବା । ଆମ ନିକଟରେ ଥିବା ପଦାର୍ଥକୁ ଆମଠାରୁ କମ୍ ପାଉଥିବା ନାଗରିକମାନଙ୍କ ମଧ୍ୟରେ ବାଣ୍ଟି ଦେବା । ଏକ ଜାତୀୟତା ଗୁଣ ବର୍ତ୍ତମାନ ଭାରତବର୍ଷର ପ୍ରୟୋଜନ ।

୧୧. **ଆଇନ -** ଆଇନକୁ ସମ୍ମାନ ଦେବା ଏବଂ ସାମାଜିକ ନ୍ୟାୟକୁ ଆମେ ସମର୍ଥନ୍ କରିବା । ଏହାରି ଉପରେ ସମୃଦ୍ଧ ଭାରତର କଲ୍ୟାଣ ଏବଂ ସୁବ୍ୟବସ୍ଥିତ ଉନ୍ନତି ନିର୍ଭର କରେ ।

୧୨. **ଦୟାଶୀଳତା -** କ୍ଷତ ନ କରିବା ( ଅହିଂସା ପରମ ଧର୍ମ ) ଆମର ଶ୍ରେଷ୍ଠ ଗୁଣ । ଦୟା ହେଲା ଦିବ୍ୟଗୁଣ । ଜୀବଙ୍କୁ ରକ୍ଷା କରିବା ଆମର ପବିତ୍ର କର୍ତ୍ତବ୍ୟ । ଭାରତୀୟଙ୍କର ଏହା ସ୍ୱତନ୍ତ୍ର ଶିକ୍ଷା । ସମସ୍ତ ପ୍ରାଣୀ ଜଗତ ପ୍ରତି ଦୟାଳୁ ହେବା ଉଚିତ୍ । ତେବେ ତୁମେ ପ୍ରକୃତ ଭାରତୀୟ ହେବ । ଦୟା, କରୁଣା ଏବଂ ସଦ୍‌ଗୁଣର ଏକ ପ୍ରତିମୂର୍ତ୍ତିରୂପେ ଜୀବନର ପ୍ରତି ମୁହୂର୍ତ୍ତ ବିତାଇବାର ଚେଷ୍ଟା କର ।

୧୩. **ପରିବେଶ -** ମନୁଷ୍ୟ ଏବଂ ପ୍ରକୃତି ଅବିଭାଜ୍ୟ । ମନୁଷ୍ୟ ଏବଂ ତାର ପ୍ରାକୃତିକ ପରିବେଶ ଅଙ୍ଗାଙ୍ଗୀଭାବେ ଜଡ଼ିତ ଏବଂ ପରସ୍ପର ନିର୍ଭରଶୀଳ । ପ୍ରକୃତିର ସମସ୍ତ ବସ୍ତୁ ଆମର ସୁରକ୍ଷା ଏବଂ ପୋଷଣ ନିମନ୍ତେ ଉଦ୍ଦିଷ୍ଟ । ତେଣୁ ପ୍ରାକୃତିକ ପରିବେଶର ସନ୍ତୁଳନ ରକ୍ଷା ଆମର କର୍ତ୍ତବ୍ୟ । ଆମର ନିରାପଦ ଜୀବନ ଏବଂ ସର୍ବୋଚ୍ଚ ସମୃଦ୍ଧି ନିମନ୍ତେ ଏହା ଅପରିହାର୍ଯ୍ୟ । ସର୍ବସାଧାରଣ ସ୍ଥାନ, ଜଳ ଏବଂ ବାୟୁକୁ ପ୍ରଦୂଷଣ କରିବା ହେଲା ଜାତୀୟ କ୍ଷତି । ଅତୀତରେ କରିଥିବା ଭୁଲକୁ ଆମେ ସଂଶୋଧନ କରିବା ।

୧୪. **ଏକତା -** ଦେଶର ନାଗରିକ ଯେତେ ଅଧିକ ସଂଘବଦ୍ଧ ହେବେ, ବାଧାବିଘ୍ନ ଏବଂ ବିପଦଗୁଡ଼ିକ ଜୟ କରିବାକୁ ସେମାନଙ୍କର ଆର୍ଥିକ



Digitized by srujanika@gmail.com

ଶକ୍ତି ସାମର୍ଥ୍ୟ ଆସିଯିବ । ଏକତା ହିଁ ବଳ । ବିଭେଦତା ପତନର କାରଣ । ବର୍ତ୍ତମାନ ଭାରତ ପାଇଁ ଏହା ପ୍ରକୃତ ସତ୍ୟ । ତେଣୁ ନିବିଡ଼ ସହଯୋଗ ଏବଂ ଆନ୍ତରିକ ସଦିଚ୍ଛା ଦେଶର ସମସ୍ତ ନାଗରିକଙ୍କ ନିମନ୍ତେ ଆମେ ଉପଯୋଗ କରିବା । ଦେଶକୁ ଭଲ ପାଇବା ଅର୍ଥ ଦେଶର ନାଗରିକଙ୍କୁ ଭଲ ପାଇବା । ଏହି ଭାବରେ ଦେଶ-ମାତୃକାର ସବୁଠାରୁ ଉତ୍କୃଷ୍ଟ ସେବା ଜଣେ ନାଗରିକ କରିପାରିବ ।

୧୫. **ଶିକ୍ଷା** - ଭାରତୀୟ ମହାନ୍ ପରମ୍ପରା ବିଷୟକ ସମ୍ମିଳିତ ନିଜର ଧାରା, ତାର ଉନ୍ନତ ପରମ୍ପରା ଏବଂ ମହାନୁଭବତାର ଆଦର୍ଶ ଏବଂ ବଞ୍ଚିବାର କୌଶଳ ଶିକ୍ଷାରେ ସ୍ଥାନ ପାଇବା ଉଚିତ୍ । ଆମ ଯୁବ ସଂପ୍ରଦାୟ ଏବଂ ଛାତ୍ରମାନଙ୍କ ନିମନ୍ତେ ଉପଯୁକ୍ତ ସମୃଦ୍ଧ ଉନ୍ନତ ଓ ମୂଲ୍ୟବାନ ଶିକ୍ଷା ପ୍ରୟୋଜନ । ଏହିପରି ଉପଯୁକ୍ତ ନାଗରିକ ରୂପେ ବିକଶିତ ହୁଅ ଏବଂ ଜୀବନର ନୀତିଗତ ଆଚରଣରେ ମାତୃଭୂମିର ସେବା କର ।

*ସ୍ୱଦେଶପ୍ରେମୀ ନାଗରିକଗଣ !*

ଅମୃତବାଣୀ - ୨

# କୋଡ଼ିଏଟି ପ୍ରଧାନ ଆଧ୍ୟାତ୍ମିକ ଉପଦେଶ :

ଏହା ହେଉଛି ସକଳ ଆଧ୍ୟାତ୍ମିକ ସାଧନାର ସାର କଥା । ଏହା ଆପଣଙ୍କୁ ମୋକ୍ଷ ପ୍ରଦାନ କରିବ । ଏହି ସବୁ ନିୟମ ନିଷ୍ଠାର ସହିତ ପାଳନ କରନ୍ତୁ । ମନ ପ୍ରତି କୌଣସି ପ୍ରକାର କୋମଳତା ପ୍ରଦର୍ଶନ କରନ୍ତୁ ନାହିଁ ।



Digitized by srujanika@gmail.com

୧. **ପ୍ରାତଃ ଜାଗରଣ** - ପ୍ରତିଦିନ ପ୍ରାତଃ ଚାରିଟାବେଳେ ଶଯ୍ୟା ତ୍ୟାଗ କରନ୍ତୁ । ଏହି ସମୟଟିକୁ ବ୍ରାହ୍ମ ମୁହୂର୍ତ୍ତ ବୋଲାଯାଏ, ଈଶ୍ୱରଙ୍କର ଧ୍ୟାନ ଓ ନାମ ଜପ ନିମନ୍ତେ ଏହା ଅତ୍ୟନ୍ତ ଉପଯୁକ୍ତ ସମୟ ଅଟେ ।

୨. **ଆସନ** - ଜପ ଓ ଧ୍ୟାନ ଅଭ୍ୟାସ କରିବା ପାଇଁ ପୂର୍ବ କିମ୍ବା ଉତ୍ତର ଦିଗକୁ ମୁହଁ କରି ଅନ୍ତତଃ ଅଧଘଣ୍ଟା ସମୟ ପଦ୍ମାସନ କିମ୍ବା ସିଦ୍ଧାସନ କିମ୍ବା ସୁଖାସନରେ ବସିବା ଅଭ୍ୟାସ କରନ୍ତୁ । ଉକ୍ତ ସମୟକୁ କ୍ରମେ ତିନିଘଣ୍ଟା ପର୍ଯ୍ୟନ୍ତ ବଢ଼ାଇବାକୁ ପଡ଼ିବ । ବ୍ରହ୍ମଚର୍ଯ୍ୟ ତଥା ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ଶୀର୍ଷାସନ କିମ୍ବା ସର୍ବାଙ୍ଗାସନ ଅଭ୍ୟାସ କରନ୍ତୁ, ପ୍ରତିଦିନ ଲଘୁ ବ୍ୟାୟାମ (ଯଥା - ପାଦରେ ଚାଲିବା) କରନ୍ତୁ ଏବଂ କୋଡ଼ିଏ ଥର ପ୍ରାଣାୟାମ କରନ୍ତୁ ।

୩. **ଜପ** - ପ୍ରତିଦିନ ନିୟମପୂର୍ବକ ଓଁ, ଓଁ ନମୋ ନାରାୟଣାୟ, ଓଁ ନମଃ ଶିବାୟ, ଓଁ ନମୋ ଭଗବତେ ବାସୁଦେବାୟ, ଓଁ ଶରବଣଭବାୟ ନମଃ, ସୀତାରାମ, ଶ୍ରୀରାମ, ହରିଃ ଓଁ, ଗାୟତ୍ରୀ ମନ୍ତ୍ର - ଏସବୁ ମଧ୍ୟରୁ ଯେ କୌଣସି ଗୋଟିଏ ମନ୍ତ୍ର ୧୦୮ ରୁ ୨୧୬୦୦ (୨୦୦ ମାଳା = ୨୦୦x୧୦୮=୨୧୬୦୦) ଜପ କରନ୍ତୁ ।

୪. **ଆହାର ସଂଯମ** - ଶୁଦ୍ଧ ସାତ୍ତ୍ୱିକ ଖାଦ୍ୟ ଖାଆନ୍ତୁ । (ଲଙ୍କା) ମରିଚ, ତେନ୍ତୁଳି, ରସୁଣ, ପିଆଜ, ଖଟା, ତେଲ, ସୋରିଷ ତଥା ହିଙ୍ଗୁ ଖାଇବା ଛାଡି ଦିଅନ୍ତୁ । ମିତାହାର କରନ୍ତୁ । ପେଟଭରି ଖାଆନ୍ତୁ ନାହିଁ । ଯେଉଁ ସବୁ ଖାଦ୍ୟ ଆପଣଙ୍କର ଅତି ପ୍ରିୟ ସେସବୁ ବର୍ଷରେ ଥରେ ଦୁଇଥର ପନ୍ଦର ଦିନ ପର୍ଯ୍ୟନ୍ତ ଖାଆନ୍ତୁ ନାହିଁ । ସରଳ ସାତ୍ତ୍ୱିକ ଭୋଜନ କରନ୍ତୁ । କ୍ଷୀର ଓ ଫଳାହାର ଏକାଗ୍ରତା ରକ୍ଷାରେ ସାହାଯ୍ୟ କରେ । ଖାଦ୍ୟକୁ ଜୀବନ ନିର୍ବାହର ସହାୟକ ଔଷଧ ରୂପେ ବ୍ୟବହାର କରନ୍ତୁ । ଜାଣି ରଖନ୍ତୁ ଯେ, ଭୋଗ ନିମନ୍ତେ ଭୋଜନ କରିବା ଏକ ପାପ । ବର୍ଷରେ



Digitized by srujanika@gmail.com

ମାଂସେ ଲୁଣ ଓ ଚିନି ଛାଡ଼ି ଦିଅନ୍ତୁ । ଆଚାର, ଚଟଣି କିମ୍ବା ତରକାରୀ ବିନା କେବଳ ଭାତ ଡାଲି ବା ରୁଟି ଡାଲି ଖାଇ ଚଳିବାକୁ ଅଭ୍ୟାସ କରନ୍ତୁ । ଡାଲିରେ ଆଉ ଟିକିଏ ଲୁଣ ପଡୁ ବୋଲି କିମ୍ବା ଚାହା କଫିରେ ଆଉ ଟିକିଏ ଦୁଧ ବା ଚିନି ଦିଅନ୍ତୁ ବୋଲି କହନ୍ତୁ ନାହିଁ ।

୫. **ଧ୍ୟାନ** - ଜପ ଧ୍ୟାନ ପାଇଁ ଅଲଗା ଧ୍ୟାନ କୋଠରୀଟିଏ ଚାବି ପକାଇ ରଖନ୍ତୁ ।

୬. **ଦାନ** - ପ୍ରତି ମାସରେ ବା ପ୍ରତି ଦିନ ଯଥାଶକ୍ତି ନିୟମିତ ଦାନ କରନ୍ତୁ କିମ୍ବା ନିଜ ଆୟରୁ ଟଙ୍କାରେ ଦଶ ପଇସା ହିସାବରେ ନିୟମିତ ଦାନ କରନ୍ତୁ ।

୭. **ସ୍ୱାଧ୍ୟାୟ** - ପ୍ରତିଦିନ ଅନ୍ତତଃ ଅଧ ଘଣ୍ଟାଏ ଗୀତା, ରାମାୟଣ, ଭାଗବତ, ବିଷ୍ଣୁ ସହସ୍ରନାମ, ଲଳିତା ସହସ୍ରନାମ, ଆଦିତ୍ୟ ହୃଦୟ, ଉପନିଷଦ, ଯୋଗବଶିଷ୍ଠ ପ୍ରଭୃତି ଗ୍ରନ୍ଥ ଅଧ୍ୟୟନ କରନ୍ତୁ ଏବଂ ଶୁଦ୍ଧ ବିଚାର ପୋଷଣ କରନ୍ତୁ ।

୮. **ବ୍ରହ୍ମଚର୍ଯ୍ୟ** - ଅତ୍ୟନ୍ତ ସାବଧାନତାର ସହିତ ବୀର୍ଯ୍ୟ ରକ୍ଷା କରନ୍ତୁ । ବୀର୍ଯ୍ୟ ହିଁ ବିଭୂତି । ବୀର୍ଯ୍ୟ ହିଁ ସମସ୍ତ ଶକ୍ତି । ବୀର୍ଯ୍ୟ ହିଁ ସମ୍ପତ୍ତି । ବୀର୍ଯ୍ୟ ହେଉଛି ଜୀବନ, ବିଚାର ତଥା ବୁଦ୍ଧିର ସାରବସ୍ତୁ ।

୯. **ପ୍ରାର୍ଥନା** - କେତୋଟି ପ୍ରାର୍ଥନା, ଭଜନ, ଶ୍ଳୋକ, ସ୍ତୋତ୍ର ମୁଖସ୍ଥ କରନ୍ତୁ । ଜପ ଓ ଧ୍ୟାନ ଆରମ୍ଭ କରିବା ପୂର୍ବରୁ ଆସନରେ ବସି ପ୍ରାର୍ଥନା, ସ୍ତୋତ୍ର ଇତ୍ୟାଦି ଆବୃତ୍ତି କରନ୍ତୁ । ସ୍ତୋତ୍ରପାଠ ମନକୁ ଶୀଘ୍ର ଉଚ୍ଚତର ସ୍ତରକୁ ନେଇଥାଏ ।

୧୦. **ସତ୍‌ସଙ୍ଗ** - ସର୍ବଦା ସତ୍‌ସଙ୍ଗ କରନ୍ତୁ । କୁସଙ୍ଗ, ଧୂମପାନ, ଆମିଷ ଭୋଜନ, ମଦ୍ୟପାନ ସଂପୂର୍ଣ୍ଣ ରୂପେ ଛାଡ଼ି ଦିଅନ୍ତୁ । କୌଣସି କୁ-ଅଭ୍ୟାସ ରଖନ୍ତୁ ନାହିଁ ।



Digitized by srujanika@gmail.com

୧୧. **ଉପବାସ** - ଏକାଦଶୀ ଦିନ ଉପବାସ କରନ୍ତୁ କିମ୍ବା କେବଳ ଦୁଧ ପିଇ ଫଳାହାର କରି ରୁହନ୍ତୁ ।

୧୨. **ଜପମାଳା** - ଗଳାରେ କିମ୍ବା ପକେଟରେ ଗୋଟିଏ ଜପମାଳା ଧାରଣ କରନ୍ତୁ । ଜପମାଳାଟି ରାତିରେ ତକିଆ ତଳେ ରଖି ପାରନ୍ତି ।

୧୩. **ମୌନବ୍ରତ** - ପ୍ରତିଦିନ ଅନ୍ତତଃ ମୌନବ୍ରତ ପାଳନ କରନ୍ତୁ ।

୧୪. **ବାକ୍ ସଂଯମ** - ସକଳ ପରିସ୍ଥିତିରେ ସତ୍ୟ ହିଁ କହନ୍ତୁ । ଅଳ୍ପ କହନ୍ତୁ । ମଧୁର ବଚନ କହନ୍ତୁ ।

୧୫. **ତୃପ୍ତ** - ଅଳ୍ପରେ ଚଳନ୍ତୁ । ଆପଣଙ୍କର ଯଦି ୪ ଖଣ୍ଡ କାମିଜ (ସାର୍ଟ) ଥାଏ, ତେବେ ତାହାକୁ କମାଇ ମାତ୍ର ଖଣ୍ଡିଏ ବା ଦୁଇ ଖଣ୍ଡ ସାର୍ଟରେ ଚଳନ୍ତୁ । ସନ୍ତୁଷ୍ଟ ତଥା ପରିତୃପ୍ତ ଜୀବନ ଯାପନ କରନ୍ତୁ । ଅଯଥା ଉଦ୍‌ବେଗ ପରିହାର କରନ୍ତୁ । ସରଳ ଜୀବନ ଯାପନ କରି ଉଚ୍ଚ ଚିନ୍ତା କରିବାକୁ ଅଭ୍ୟାସ କରନ୍ତୁ ।

୧୬. **ଅହିଂସା** - କଦାପି କାହାକୁ ଆଘାତ ଦିଅନ୍ତୁ ନାହିଁ । ଅହିଂସା ପରମ ଧର୍ମ । ପ୍ରେମ, କ୍ଷମା ଓ ଦୟା ଦ୍ୱାରା କ୍ରୋଧ ଦମନ କରନ୍ତୁ ।

୧୭. **ଆତ୍ମନିର୍ଭରଶୀଳତା** - ଚାକର ବାକରଙ୍କ ଉପରେ ନିର୍ଭର କରନ୍ତୁ ନାହିଁ । ସ୍ୱାବଲମ୍ବନଶୀଳତା ହିଁ ଶ୍ରେଷ୍ଠ ସଦ୍‌ଗୁଣ ।

୧୮. **ଆତ୍ମସମୀକ୍ଷା** - ରାତିରେ ଶୋଇବାକୁ ଯିବା ପୂର୍ବରୁ ଦିନ ଭିତରେ କେଉଁ କେଉଁ ଭୁଲ କରିଛନ୍ତି, ତାହା ବିଚାର କରନ୍ତୁ । ଦୈନିକ ଡାଇରୀ ଲେଖନ୍ତୁ ଏବଂ ଆତ୍ମ ସଂଶୋଧନ ପାଇଁ ଖଣ୍ଡିଏ ଖାତାରେ ନିୟମିତ ଭାବରେ ପ୍ରତିଦିନ ଦୋଷ ତ୍ରୁଟି ଗୁଡ଼ିକ ଲେଖନ୍ତୁ । ଅତୀତର ଭୁଲ ପାଇଁ ଚିନ୍ତିତ ହୁଅନ୍ତୁ ନାହିଁ ।



Digitized by srujanika@gmail.com

୧୯. **ମୃତ୍ୟୁ ସ୍ମରଣ** - ମନେ ରଖନ୍ତୁ ଯେ, ମୃତ୍ୟୁ ଛକି ବସିଛି, ସେ ଆସି କେଉଁ ମୁହୂର୍ତ୍ତରେ ଆପଣଙ୍କୁ ନେଇ ଯିବ, ତାର ଠିକଣା ନାହିଁ । ସଦାଚାରୀ ହୁଅନ୍ତୁ ।

୨୦. **ଶରଣାଗତ** - ନିଦ ଭାଙ୍ଗିଯିବା କ୍ଷଣି ଏବଂ ଶୋଇବାକୁ ଯିବା ପୂର୍ବରୁ ଈଶ୍ୱରଙ୍କୁ ସ୍ମରଣ କରନ୍ତୁ । ଈଶ୍ୱରଙ୍କ ଠାରେ ସଂପୂର୍ଣ୍ଣ ରୂପେ ଆତ୍ମ ସମର୍ପଣ କରିଦିଅନ୍ତୁ ।

*ସ୍ୱାମୀ ଶିବାନନ୍ଦ ସରସ୍ୱତୀ ମହାରାଜ*
*ଦିବ୍ୟଜୀବନ ସଂଘ, ଋଷିକେଶ*

ଅମୃତବାଣୀ - ୩

## ସାଧନା ତତ୍ତ୍ୱ :
### ବା ଦ୍ରୁତ ଆଧ୍ୟାତ୍ମିକ ବିକାଶ ପାଇଁ ସପ୍ତସାଧନା ବିଦ୍ୟା ଉପକ୍ରମଣିକା

୧. କେବଳ ତତ୍ତ୍ୱତଃ ହଜାରେ ପ୍ରକାର ବିଷୟ କାର୍ଯ୍ୟତଃ ଗୋଟିଏ ପ୍ରକାର ବିଷୟ ଅଭ୍ୟାସ କରିବା ଶ୍ରେୟସ୍କର । ତେଣୁ ଯୋଗ, ଧର୍ମ ଓ ଦାର୍ଶନିକ ଜ୍ଞାନକୁ ଜୀବନର କର୍ମକ୍ଷେତ୍ରରେ ଲଗାଇବାର ଅଭ୍ୟାସ କରନ୍ତୁ ।

୨. ଏହି ସାଧନା ତତ୍ତ୍ୱରେ ସନାତନ ଧର୍ମର ସାରକଥା ୩୨ ଗୋଟି ଉପଦେଶ ମାଧ୍ୟମରେ ଅତି ବିଶୁଦ୍ଧ ରୂପରେ ପରିବେଷଣ କରାଯାଇଛି । ଏହି ଯୁଗର ଅତି କାର୍ଯ୍ୟବ୍ୟସ୍ତ ମନୁଷ୍ୟ ସମସ୍ତ ସାଧନାର ପରିମାଣ ଓ ସମୟ ଧୀର ଧୀରେ ବଢ଼ାଇ ଚାଲନ୍ତୁ ।

୩. ସ୍ୱଭାବକୁ ହଠାତ୍ ବଦଳାଇ ହୁଏ ନାହିଁ । ତେଣୁ ଏଥିରେ ପ୍ରଦତ୍ତ ଉପଦେଶ ମଧ୍ୟରୁ ଯେଉଁ ଅଳ୍ପ କେତେକ ଆପଣଙ୍କ ପକ୍ଷରେ ପାଳନ



Digitized by srujanika@gmail.com

କରିବା ସହଜ ବୋଧ ହେବ, ପ୍ରଥମେ ସେହି କେତୋଟି ଉପଦେଶ ପାଳନ କରିବାକୁ ସଂକଳ୍ପ କରନ୍ତୁ । ତା ଫଳରେ ଆପଣଙ୍କ ସ୍ୱଭାବରେ କିଛିଟା ହେଲେ ବି ଉନ୍ନତି ଘଟିବ । ଯଦି ଅସୁସ୍ଥତା ବା କାର୍ଯ୍ୟବ୍ୟସ୍ତତା କି କୌଣସି ଅନିବାର୍ଯ୍ୟ କାରଣରୁ କୌଣସି ଦିନ ନିର୍ଦ୍ଦିଷ୍ଟ ସାଧନା କରିବାକୁ ଅସମର୍ଥ ହୁଅନ୍ତି, ତେବେ ତା ପରିବର୍ତ୍ତେ ଈଶ୍ୱରଙ୍କ ନାମ ସ୍ମରଣ କରନ୍ତୁ ବା ଜପ କରନ୍ତୁ; ଯାହାକି ଚାଲିବା, ବୁଲିବା କିମ୍ବା ସାଂସାରିକ କର୍ମ କରିବା ସମୟରେ ମଧ୍ୟ କରାଯାଇ ପାରିବ ।

# ଆରୋଗ୍ୟ ସାଧନା

୧. **ମିତହାର** - ଅଧାପେଟ ଖାଆନ୍ତୁ । ଲଘୁପାଚ୍ୟ ଓ ସରଳ ଖାଦ୍ୟ ଖାଆନ୍ତୁ । ସୁଷମ ଖାଦ୍ୟ ଖାଆନ୍ତୁ । ଭଗବାନଙ୍କୁ ଅର୍ପଣ କରି ଖାଆନ୍ତୁ ।

୨. **ରଜୋଗୁଣ ଓ ତମୋଗୁଣ** - ବର୍ଦ୍ଧକ ଖାଦ୍ୟ ତ୍ୟାଗ, ଲଙ୍କାମରିଚ, ପିଆଜ, ରସୁଣ, ତେନ୍ତୁଳି ପ୍ରଭୃତି ଯଥାସମ୍ଭବ ତ୍ୟାଗ କରନ୍ତୁ । ଚା, କଫି, ଧୂମପାନ ତାମ୍ବୁଲ (ପାନ), ମାଛ, ମାଂସ ଓ ମଦ୍ୟ ପ୍ରଭୃତି ତାମସିକ ଖାଦ୍ୟ ସମ୍ପୂର୍ଣ୍ଣ ତ୍ୟାଗ କରନ୍ତୁ ।

୩. **ବ୍ରତ - ଉପାହାର** - ଏକାଦଶୀରେ ଉପବାସ କରନ୍ତୁ ; ସେ ଦିନ କେବଳ ଦୁଧ ଓ ଫଳମୂଳ ଖାଇ ରହନ୍ତୁ ।

୪. **ଆସନ ଓ ବ୍ୟାୟାମ** - ପ୍ରତ୍ୟହ ୧୫ ରୁ ୩୦ ମିନିଟ ଯୋଗାସନ ଓ ବ୍ୟାୟାମ କରନ୍ତୁ । ପ୍ରତ୍ୟହ ଦୁଇ ତିନି କି.ମି. ଚାଲନ୍ତୁ କିମ୍ବା କସରତ ହେଲାଭଳି ଖେଳାଖେଳି କରନ୍ତୁ ।

୫. **ମୌନ** - ପ୍ରତ୍ୟହ ଦୁଇ ଘଣ୍ଟା ଓ ରବିବାର ଦିନ ଆଠ ଘଣ୍ଟା ମୌନବ୍ରତ ପାଳନ କରନ୍ତୁ ।



Digitized by srujanika@gmail.com

୬. **ବ୍ରହ୍ମଚର୍ଯ୍ୟ** - ନିଜର ବୟସ ଓ ଅବସ୍ଥା ଅନୁଯାୟୀ ବ୍ରହ୍ମଚର୍ଯ୍ୟ ପାଳନ କରନ୍ତୁ । ମାସରେ ଥରେ ମାତ୍ର ଯୌନ ସଂପର୍କ ରଖି ପାରନ୍ତି । କିନ୍ତୁ ତାହାକୁ କମାଇ କମାଇ ବର୍ଷକରେ ଗୋଟିଏ ଥରକୁ ନେଇ ଆସନ୍ତୁ । ଶେଷରେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ପ୍ରତିଜ୍ଞା କରନ୍ତୁ ।

## ଚରିତ୍ର ସାଧନା

୭. **ସତ୍ୟ** - ସତ୍ୟ କହନ୍ତୁ । ଅଳ୍ପ କହନ୍ତୁ । କୋମଳ ବଚନ କହନ୍ତୁ ।

୮. **ଅହିଂସା** - ମନ, ବଚନ ଓ କର୍ମରେ କାହାରିକୁ କଷ୍ଟ ଦିଅନ୍ତୁ ନାହିଁ । ପ୍ରାଣୀ ମାତ୍ରକେ ସମସ୍ତଙ୍କ ପ୍ରତି ଦୟା ଭାବ ରଖନ୍ତୁ ।

୯. **ଆର୍ଜବ** - ନିଜର କଥା ଓ କାର୍ଯ୍ୟରେ ସରଳ, ସ୍ପଷ୍ଟ ନିଷ୍କପଟ ହୁଅନ୍ତୁ ।

୧୦. **ସାଧୁତା** - ସାଧୁ ହୁଅନ୍ତୁ । ନିଜେ ପରିଶ୍ରମ କରି ଜୀବିକା ଉପାର୍ଜନ କରନ୍ତୁ । ଅଧର୍ମରେ ଅନ୍ୟାୟ ମାର୍ଗରେ ଉପାର୍ଜିତ ଧନ ବା ବସ୍ତୁ ବା ଉପକାର ଗ୍ରହଣ କରନ୍ତୁ ନାହିଁ । ସଜ୍ଜନତା ଓ ଚରିତ୍ରବତ୍ତାର ବିକାଶ କରନ୍ତୁ ।

୧୧. **କ୍ଷମା** - କ୍ଷମା, ଧୈର୍ଯ୍ୟ, ଶାନ୍ତି, ଦୟା ଓ ସହିଷ୍ଣୁତା ଦ୍ୱାରା କ୍ରୋଧ ଦମନ କରନ୍ତୁ । ଅନ୍ୟର ଦୋଷ ଭୁଲି ଯାଇ କ୍ଷମା ଦିଅନ୍ତୁ ।

## ଇଚ୍ଛାଶକ୍ତି ସାଧନା

୧୨. **ମନସଂଯମ** - ପ୍ରତିବର୍ଷ ଏକ ସପ୍ତାହ ବା ଏକ ମାସ ପାଇଁ ଚିନି ଖାଆନ୍ତୁ ନାହିଁ ; ରବିବାର ଦିନ ଲୁଣ ଖାଆନ୍ତୁ ନାହିଁ ।

୧୩. **କୁ ସଙ୍ଗତ୍ୟାଗ** - ତାସ ଖେଳ, ଉପନ୍ୟାସ ପାଠ, ସିନେମାଦେଖା ଓ କ୍ଲବ ଯିବା ଛାଡ଼ି ଦିଅନ୍ତୁ । ଦୁର୍ଜନଙ୍କଠାରୁ ଦୂରେଇ ରହନ୍ତୁ । ବସ୍ତୁବାଦୀ



Digitized by srujanika@gmail.com

ଲୋକଙ୍କ ସହିତ ଆଳାପ ଆଲୋଚନା କରିବା ଛାଡ଼ି ଦିଅନ୍ତୁ । ଯାହାର ଈଶ୍ୱର ବିଶ୍ୱାସ ନାହିଁ ଏବଂ ଯେ ଆପଣଙ୍କର ସାଧନାକୁ ସମାଲୋଚନା କରେ, ତା ସହିତ ମିଳାମିଶା କରନ୍ତୁ ନାହିଁ ।

୧୪. **ସରଳ ଜୀବନ** - ନିଜର ଚାହିଦା କମାଇ ଦିଅନ୍ତୁ । ଧୀରେ ଧୀରେ ନିଜର ବ୍ୟବହାର୍ଯ୍ୟ ଜିନିଷପତ୍ରର ସଂଖ୍ୟା ଓ ଧନ ସଂପଦର ପରିମାଣ କମାଇ ଦିଅନ୍ତୁ । ସରଳ ଜୀବନ ଯାପନ କରି ଉଚ୍ଚ-ବିଚାର ପୋଷଣ କରନ୍ତୁ ।

୧୫. **ପରୋପକାର** - ପରୋପକାର ହିଁ ପରମ ଧର୍ମ । ଅହଂକାର ନ ରଖି ଏବଂ ପୁରସ୍କାର ପାଇବାର ଆଶା ନ ରଖି ପ୍ରତି ସପ୍ତାହରେ କେତେ ଘଣ୍ଟା ନିଷ୍କାମ ସେବା କରନ୍ତୁ । ନିଜର ସାଂସାରିକ କର୍ମ ମଧ୍ୟ ସେହି ମନୋଭାବରେ କରନ୍ତୁ । କର୍ତ୍ତବ୍ୟ କର୍ମ କରିବା ହିଁ ଈଶ୍ୱର ଆରାଧନା । ସକଳ କର୍ମ ଈଶ୍ୱରଙ୍କୁ ଅର୍ପଣ କରନ୍ତୁ ।

୧୬. **ଦାନ** -ପ୍ରତି ମାସରେ ନିଜ ଆୟର ଟଙ୍କାକେ ଦୁଇ ପଇସାରୁ ଆରମ୍ଭ କରି ଦଶପଇସା ହାରରେ ଦାନ କରନ୍ତୁ । ଆପଣଙ୍କ ସମ୍ପଦକୁ ଅନ୍ୟମାନଙ୍କ ସହିତ ମିଶି ଉପଭୋଗ କରନ୍ତୁ । 'ବସୁଧୈବ କୁଟୁମ୍ବକମ୍' ଭାବ ନେଇ ଚଳନ୍ତୁ ! ସ୍ୱାର୍ଥ ତ୍ୟାଗ କରନ୍ତୁ ।

୧୭. **ନମ୍ରତା** - ବିନୟୀ ହୁଅନ୍ତୁ । ସକଳ ପ୍ରାଣୀଙ୍କୁ ମାନସିକ ପ୍ରଣାମ କରନ୍ତୁ । ସର୍ବତ୍ର ଈଶ୍ୱରଙ୍କ ଅସ୍ତିତ୍ୱ ଅନୁଭବ କରନ୍ତୁ । ମିଥ୍ୟାଭିମାନ, ଦମ୍ଭ ଓ ଗର୍ବ ତ୍ୟାଗ କରନ୍ତୁ ।

୧୮. **ଶ୍ରଦ୍ଧା** - ଗୀତା, ଗୁରୁ ଓ ଈଶ୍ୱରଙ୍କ ଠାରେ ଆତ୍ମ ସମର୍ପଣ କରି ପ୍ରାର୍ଥନା କରନ୍ତୁ, "ହେ ପ୍ରଭୁ, ତୁମର ଇଛା ପୂର୍ଣ୍ଣ ହେଉ; ମୁଁ ଆଉ କିଛି ଚାହେଁନା" ସକଳ ପରିସ୍ଥିତି ଓ ସମସ୍ତ ଘଟଣାରେ ଈଶ୍ୱରଙ୍କ ଇଚ୍ଛାର ପ୍ରାଧାନ୍ୟ ଉପଲବ୍‌ଧି କରି ସମ ଭାବରେ ତାହାର ଅଧୀନ ହୋଇ ଯାଆନ୍ତୁ ।



Digitized by srujanika@gmail.com

୧୯. **ସର୍ବାତ୍ମଭାବ** - ସକଳ ପ୍ରାଣୀଙ୍କ ଠାରେ ଈଶ୍ୱର ଦର୍ଶନ କରନ୍ତୁ ଏବଂ ସମସ୍ତଙ୍କୁ ସ୍ୱ-ଆତ୍ମା ସମାନ ମନେ କରି ସମସ୍ତଙ୍କ ଠାରେ ପ୍ରେମ ଭାବ ରଖନ୍ତୁ । କାହାରିକୁ ଘୃଣା କରନ୍ତୁ ନାହିଁ ।

୨୦. **ନାମ ସ୍ମରଣ** - ସର୍ବଦା ଈଶ୍ୱରଙ୍କ ନାମ ସ୍ମରଣ କରନ୍ତୁ । ଅନ୍ତତଃ ସକାଳେ ନିଦରୁ ଉଠିବା ପରେ, କାମ କରିବା ଭିତରେ ଟିକିଏ ସମୟ ମିଳିବା କ୍ଷଣି ଏବଂ ରାତିରେ ଶୋଇବା ପୂର୍ବରୁ ଈଶ୍ୱରଙ୍କ ନାମ ସ୍ମରଣ କରନ୍ତୁ । ପାଖରେ ସବୁବେଳେ ଜପ ମାଳାଟିଏ ରଖନ୍ତୁ ।

## ମାନସିକ ସାଧନା

୨୧. **ଗୀତା ଅଧ୍ୟୟନ** - ପ୍ରତିଦିନ ଗୀତାର ଗୋଟିଏ ଅଧ୍ୟାୟ କିମ୍ବା ଅନ୍ତତଃ ୧୦ଟି ଶ୍ଳୋକ ଅର୍ଥ ସହିତ ଅଧ୍ୟୟନ କରନ୍ତୁ । ଗୀତାର ମୂଳ ଶ୍ଳୋକଗୁଡ଼ିକର ଅର୍ଥ ବୁଝିବା ନିମନ୍ତେ ସଂସ୍କୃତ ଶିଖନ୍ତୁ ।

୨୨. **ଗୀତା ମୁଖସ୍ଥ** - ଧୀରେ ଧୀରେ ସମଗ୍ର ଗୀତାଟି ମୁଖସ୍ଥ କରି ପକାନ୍ତୁ । ପକେଟରେ ସବୁବେଳେ ଖଣ୍ଡିଏ (ଗୀତା) ବହି ଧରନ୍ତୁ ।

୨୩. **ସ୍ୱାଧ୍ୟାୟ** - ପ୍ରତିଦିନ ବା ଅନ୍ତତଃ ଛୁଟିଦିନମାନଙ୍କରେ ରାମାୟଣ, ଭାଗବତ, ଉପନିଷଦ, ଯୋଗବଶିଷ୍ଠ କିମ୍ବା ଅନ୍ୟ ଧର୍ମଗ୍ରନ୍ଥରୁ କିଛି ଅଂଶ ଅବଶ୍ୟ ଅଧ୍ୟୟନ କରନ୍ତୁ ।

୨୪. **ସତ୍‌ସଙ୍ଗ** - କୀର୍ତ୍ତନ, ସତ୍‌ସଙ୍ଗ, ସନ୍ଥ ସମାଗମ କିମ୍ବା ଧର୍ମସଭା ପ୍ରଭୃତିରେ ଯୋଗ ଦେବାର କୌଣସି ସୁଯୋଗ ଛାଡନ୍ତୁ ନାହିଁ । ଛୁଟି ଦିନମାନଙ୍କରେ ଏହିଭଳି ଅନୁଷ୍ଠାନମାନ ଆୟୋଜନ କରନ୍ତୁ ।



Digitized by srujanika@gmail.com

୨୫. **ମନ୍ଦିର ଦର୍ଶନ** - ପ୍ରତି ସପ୍ତାହରେ ଅନ୍ତତଃ ଥରଟିଏ ଦେବମନ୍ଦିର ବା ଉପାସନା ପୀଠ ଦର୍ଶନ କରିବାକୁ ଯାଆନ୍ତୁ । ସେଠାରେ ଭଜନ, କୀର୍ତ୍ତନ ତଥା ପ୍ରବଚନ ପାଇଁ ସଜ୍ଜନମାନଙ୍କର ସମ୍ମିଳନୀ ଆୟୋଜନ କରନ୍ତୁ ।

୨୬. **ଏକାନ୍ତବାସ** - ଅବକାଶ ସମୟତକ କିମ୍ବା ଛୁଟି ଦିନଗୁଡ଼ିକ ଯଥା ସମ୍ଭବ ସାଧୁ ସନ୍ଥଙ୍କ ଗହଣରେ କଟାନ୍ତୁ କିମ୍ବା କୌଣସି ପବିତ୍ର ସ୍ଥାନକୁ ଯାଇ ସେଠାରେ ଏକାନ୍ତରେ ବସି ସାଧନା କରନ୍ତୁ ।

## ଆଧ୍ୟାତ୍ମିକ ସାଧନା

୨୭. **ବ୍ରାହ୍ମମୁହୂର୍ତ୍ତ** - ରାତିରେ ଶୀଘ୍ର ଶୋଇପଡ଼ି ପ୍ରାତଃ ୪ଟାରେ ବ୍ରାହ୍ମ ମୁହୂର୍ତ୍ତରେ ଉଠିପଡନ୍ତୁ । ଉଠିବାର ଅଧ ଘଣ୍ଟାକ ଭିତରେ ଶୌଚ, ଦାନ୍ତଘଷା ଓ ଗାଧୁଆ-ପାଧୁଆ ସାରି ଦିଅନ୍ତୁ ।

୨୮. **ଜପ, ଧ୍ୟାନ ଓ ପ୍ରାର୍ଥନା** - ପଦ୍ମାସନ, ସିଦ୍ଧାସନ ବା ସୁଖାସନରେ ବସି ସକାଳ ୫ଟାରୁ ୬ ଟା ଶେଷ ଯାଏଁ ପ୍ରାଣାୟମ, ଜପ, ଧ୍ୟାନ, ସ୍ତୋତ୍ର ପାଠ ଓ କୀର୍ତ୍ତନ କରନ୍ତୁ । ଆରମ୍ଭରୁ ଶେଷ ଯାଏଁ ଗୋଟିଏ ଆସନରେ ବସି ଏ ସବୁ ଅଭ୍ୟାସ କରନ୍ତୁ ।

୨୯. **ସନ୍ଧ୍ୟା ବନ୍ଦନା** - ଦୈନିକ ସନ୍ଧ୍ୟା, ଗାୟତ୍ରୀ ଜପ, ନିତ୍ୟକର୍ମ ଓ ପୂଜାପାଠ କରନ୍ତୁ ।

୩୦. **ମନ୍ତ୍ର ଲିଖନ** - ପ୍ରତ୍ୟେକ ୧୦ ମିନିଟରୁ ଅଧ ଘଣ୍ଟାଏ ପର୍ଯ୍ୟନ୍ତ ଖଣ୍ଡିଏ ଖାତାରେ ନିଜର ଇଷ୍ଟମନ୍ତ୍ର ବା ଭଗବାନଙ୍କ ନାମ ଲେଖନ୍ତୁ ।

୩୧. **ମନ୍ତ୍ରପାଠ, ଭଜନ, କୀର୍ତ୍ତନ** - ରାତିରେ ସ୍ୱଜନ ଓ ବନ୍ଧୁମାନଙ୍କ ସହିତ ମିଶି ଅଧ ଘଣ୍ଟାରୁ ଏକ ଘଣ୍ଟା ପର୍ଯ୍ୟନ୍ତ ନାମ ସଂକୀର୍ତ୍ତନ, ସ୍ତୋତ୍ର ପାଠ ଓ ଭଜନ ଗାନ କରନ୍ତୁ ।



Digitized by srujanika@gmail.com

୩୨. **ଦୈନନ୍ଦିନ -** ଉପରୋକ୍ତ ପ୍ରଣାଳୀରେ ସାଧନା କରିବା ଲାଗି ପ୍ରତିବର୍ଷ ଆରମ୍ଭରେ ସଂକଳ୍ପ କରନ୍ତୁ । ନିୟମିତତା, ନିଷ୍ଠା ଓ ତତ୍ପରତାର ସହିତ ସଂକଳ୍ପ ପାଳନ କରିବା ଆବଶ୍ୟକ । ସାଧନାର ବିବରଣୀ ଗୋଟିଏ ଆଧ୍ୟାତ୍ମିକ ଡାଇରୀରେ ଟିପି ରଖନ୍ତୁ । ପ୍ରତିମାସ ଶେଷରେ ତାହାକୁ ସମୀକ୍ଷା କରି ନିଜର ତ୍ରୁଟି ସୁଧାରନ୍ତୁ ।

**ସ୍ୱାମୀ ଶିବାନନ୍ଦ ସରସ୍ୱତୀ ମହାରାଜ**
**ଦିବ୍ୟଜୀବନ ସଂଘ, ଋଷିକେଶ**

*ଓଁ ଶାନ୍ତି ଶାନ୍ତି ଶାନ୍ତିଃ !*

# ସ୍ୱାମୀ ବିବେକାନନ୍ଦଙ୍କ ବାଣୀ

୧. କଠୋପନିଷଦ୍‌ର 'ଶ୍ରଦ୍ଧା' କଥା ସ୍ମରଣ କର - 'ଶ୍ରଦ୍ଧା ନିବେଶ' । ବାଳକ ନଚିକେତା ଶ୍ରଦ୍ଧା ବଳରେ ଯମ ମୁହଁକୁ ଯିବାକୁ ଡରିଲା ନାହିଁ । ଶ୍ରଦ୍ଧା ବଳରେ ସେ ଆତ୍ମଜ୍ଞାନ ଲାଭ କରି ମୃତ୍ୟୁଞ୍ଜୟୀ ହୋଇଥିଲା । ଏହି ଶ୍ରଦ୍ଧା ବିଷୟରେ ସମସ୍ତଙ୍କୁ ଉପଦେଶ ଦିଅ । ସମସ୍ତ ଧର୍ମ ମୂଳରେ, ସମସ୍ତ ଆତ୍ମୋନ୍ନତି ମୂଳରେ ଏହି ଶ୍ରଦ୍ଧା ବା ବିଶ୍ୱାସ ହିଁ ହେତୁ । ପ୍ରଥମେ ନିଜ ଉପରେ ବିଶ୍ୱାସସମ୍ପନ୍ନ ହୁଅ । ଆତ୍ମବିଶ୍ୱାସ ନ ଥିଲେ କେବେ ହେଲେ ତୁମର ମୁକ୍ତି ହେବ ନାହିଁ । ବିଶ୍ୱାସ, ବିଶ୍ୱାସ, ବିଶ୍ୱାସ; ନିଜ ଉପରେ ବିଶ୍ୱାସ, ଈଶ୍ୱରଙ୍କ ଠାରେ ବିଶ୍ୱାସ ହିଁ ସର୍ବବିଧ ଉନ୍ନତିର ଉପାୟ ।



Digitized by srujanika@gmail.com

୨. ଶୁଦ୍ଧ ପବିତ୍ର ହୁଅ, ଈଶ୍ୱରଙ୍କ ଠାରେ ବିଶ୍ୱାସ ସ୍ଥାପନ କର, ସବୁବେଳେ ତାହାଙ୍କ ଉପରେ ନିର୍ଭର କର, ତା ହେଲେ କେହି ତୁମକୁ ବାଧା ଦେଇପାରିବେ ନାହିଁ । ଏକ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କାହାରି ନିକଟରୁ ସାହାଯ୍ୟ ଭିକ୍ଷା କର ନାହିଁ । ମନୁଷ୍ୟମାନଙ୍କ ଅପେକ୍ଷା ସର୍ବଶକ୍ତିମାନ୍ ଈଶ୍ୱରଙ୍କ ସାହାଯ୍ୟ ଅଧିକତର ନୁହେଁ କି ? ଆତ୍ମବିଶ୍ୱାସୀ ଶ୍ରଦ୍ଧାଳୁ ବ୍ୟକ୍ତି ହିଁ ମହତ୍ କାର୍ଯ୍ୟ କରିବାକୁ ସମର୍ଥ ।

୩. ନିଜର ଆଦର୍ଶ ବା ଇଷ୍ଟରେ ଦୃଢ଼ ବିଶ୍ୱାସ ସ୍ଥାପନ କର । ତୁମର ଭକ୍ତି ବା ବିଶ୍ୱାସ ଯେପରି କ୍ଷଣସ୍ଥାୟୀ ନ ହୁଏ, କେବଳ ଭାବପ୍ରବଣତାରେ ପର୍ଯ୍ୟବସିତ ନ ହୁଏ, ସେଥି ପ୍ରତି ସଚେତନ ହୁଅ । ଚାତକ ପକ୍ଷୀ ବୃଷ୍ଟି ଜଳ ବ୍ୟତୀତ ଅନ୍ୟ ଜଳ ପାନ କରେ ନାହିଁ । ଶତ ଶତ ଘଡ଼ଘଡ଼ି, ବିଜୁଳି ମାଇଲେ ସୁଦ୍ଧା ସେ ବର୍ଷାଜଳ ପାନ କରିବା ସକାଶେ ଆକାଶ ଆଡ଼କୁ ଚାହିଁ ରହିଥାଏ ।

୪. ସତ୍‌କାର୍ଯ୍ୟରେ ପ୍ରବଳ ଉଦ୍ୟମ, ପ୍ରାଣପାତ କରି ସୁଦ୍ଧା ଯଦି କୃତକାର୍ଯ୍ୟ ନ ହୁଅ, ତାହାହେଲେ ମଧ୍ୟ ହତାଶ ହୁଅ ନାହିଁ । ମୃତ୍ୟୁକୁ ବରଣ କରିବା ଶ୍ରେୟ ; କିନ୍ତୁ ସତ୍ୟ ସଂକଳ୍ପରୁ ଟଳିବା ଉଚିତ ନୁହେଁ । 'ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି' ମୃତ୍ୟୁ ଯେତେବେଳେ ଅନିବାର୍ଯ୍ୟ ସେତେବେଳେ ଉଚ୍ଚ ଆଦର୍ଶ ପାଇଁ ମରିବା ଭଲ ।

୫. ଯାହାଠାରେ ସତ୍ୟ, ପବିତ୍ରତା, ନିଃସ୍ୱାର୍ଥପରତା ବିଦ୍ୟମାନ, ବାଧା ବିପତ୍ତି ତାହାର କଅଣ କରିବ ! ଜଗତବାସୀ ତାହାର ବିରୋଧରେ ଦଣ୍ଡାୟମାନ ହେଲେ ସୁଦ୍ଧା ତାହାର କୌଣସି ଅନିଷ୍ଟ ହୁଏ ନାହିଁ ।





Digitized by srujanika@gmail.com



# ଦଶାବତାର ସ୍ତୋତ୍ର

୧. ପ୍ରଳୟ ପୟୋଧି ଜଳେ ଧୃତ ବାନସି ବେଦଂ,
ବିହିତ ବହିତ୍ର ଚରିତ୍ର ମଖେଦମ୍ ।
କେଶବ ଧୃତ ମୀନ ଶରୀର
ଜୟ ଜଗଦୀଶ ହରେ ।

୨. କ୍ଷିତିରତି ବିପୁଳତରେ ତବ ତିଷ୍ଠତି ପୃଷ୍ଠେ,
ଧରଣୀ ଧାରଣ କିଣଚକ୍ର ଗରିଷ୍ଠେ ।
କେଶବ ଧୃତ କଚ୍ଛପ ରୂପ
ଜୟ ଜଗଦୀଶ ହରେ ।

୩. ବସତି ଦଶନଶିଖରେ ଧରଣୀ ତବଲଗ୍ନା,
ଶଶିନି କଳଙ୍କ କଳେବ ନିମଗ୍ନା ।
କେଶବ ଧୃତ ନରହରି ରୂପ
ଜୟ ଜଗଦୀଶ ହରେ ।

୪. ତବ କର କମଳ ବରେ ନଖମଦ୍ଭୁତ ଶୃଙ୍ଗ,
ଦଳିତ ହରିଣ୍ୟକଶିପୁ ତନୁ ଭୃଙ୍ଗ ।
କେଶବ ଧୃତ ନରହରି ରୂପ
ଜୟ ଜଗଦୀଶ ହରେ ।

୫. ଛଳୟସି ବିକ୍ରମଣେ ବଳିମଦ୍ଭୁତ ବାମନ,
ପଦନଖ ନୀର ଜନିତ ଜନ ପାବନ ।
କେଶବ ଧୃତ ବାମନ ରୂପ
ଜୟ ଜଗଦୀଶ ହରେ ।



Digitized by srujanika@gmail.com

୬. କ୍ଷତ୍ରିୟ ରୁଧିର ମୟେ ଜଗଦପଗତ ପାପମ୍,
ସ୍ନପୟସି ପୟସି ସବିତ ଭଗତାପମ୍ ।
କେଶବ ଧୃତ ଭୃଗୁପତି ରୂପ
ଜୟ ଜଗଦୀଶ ହରେ ।

୭. ବିତରସି ଦିକ୍ଷୁରଣେ ଦିକ୍‌ପତି କମନୀୟମ୍ ।
ଦଶମୁଖ ମୌଳି ବଳିଂ ରମଣୀୟମ୍ ।
କେଶବ ଧୃତ ରାମ ଶରୀର
ଜୟ ଜଗଦୀଶ ହରେ ।

୮. ବହସି ବିପୁସି ବିଶଦେ ବସନଂ ଜନଦାଭଂ,
ହଳହତିଭୀତି ମିଳିତ ଯମୁନାଭଂ ।
କେଶବ ଧୃତ ହଳଧର ରୂପ
ଜୟ ଜଗଦୀଶ ହରେ ।

୯. ନିନ୍ଦସି ଯଜ୍ଞ ବିଧେରହ ଶ୍ରୁତିଜାତମ୍,
ସଦୟ ହୃଦୟ ଦର୍ଶିତ ପଶୁଘାତମ୍ ।
କେଶବ ଧୃତ ବୁଦ୍ଧ ଶରୀର
ଜୟ ଜଗଦୀଶ ହରେ ।

୧୦. ମ୍ଳେଚ୍ଛ ନିବହ ନିଧନେ କଳୟସି କରବାଳମ୍
ଧୂମକେତୁମିବ କିମପି କରାଳମ୍ ।
କେଶବ ଧୃତ କଲ୍‌କୀ ଶରୀର
ଜୟ ଜଗଦୀଶ ହରେ ।

୧୧. ଶ୍ରୀ ଜୟଦେବ କବେରିଦଂ ମୁଦିତ ମୁଦାରମ୍,
ଶୃଣୁ ସୁଖଦଂ ଭବସାରମ୍ ।
କେଶବ ଧୃତ ଦଶବିଧ ରୂପ
ଜୟ ଜଗଦୀଶ ହରେ ।

*ମହାକବି ଶ୍ରୀ ଜୟଦେବ*
*(ଦ୍ୱାଦଶ ଶତାବ୍ଦୀ)*



Digitized by srujanika@gmail.com

# ଶ୍ରୀ ଜଗନ୍ନାଥାଷ୍ଟକମ୍

କଦାଚିତ୍ କାଳନ୍ଦିତଟ ବିପିନ-ସଂଗୀତକବରୋ
ମୁଦାଭୀରୀ-ନାରୀ-ବଦନ କମଳାସ୍ୱାଦ-ମଧୁପଃ
ରମା-ଶମ୍ଭୁ ବ୍ରହ୍ମାସୁରପତି ଗଣେଶାର୍ଚ୍ଚିତ ପଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୧।

ଭୁଜେ ସବ୍ୟେ ବେଣୁଂ ଶିରସି ଶିଖିପୁଚ୍ଛଂ କଟୀତଟେ
ଦୁକୂଳଂ ନେତ୍ରାନ୍ତେ ସହଚର କଟାକ୍ଷଂ ବିଦଧତେ ।
ସଦା ଶ୍ରୀମଦ୍ ବୃନ୍ଦାବନ ବସତି ଲୀଳା-ପରିଚୟୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୨।

ମହାମ୍ଭୋଧେସ୍ତୀରେ କନକରୁଚିରେ ନୀଳଶିଖରେ
ବସନ୍ ପ୍ରାସାଦାନ୍ତେ ସହଜ ବଳଭଦ୍ରେଣ ବଳିନା ।
ସୁଭଦ୍ରା ମଧ୍ୟସ୍ଥଃ ସକଳ ସୁରସେବାବସରଦୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୩।

କୃପାପାରାବାରଃ ସଜଳଜଳଦଶ୍ରେଣୀରୁଚିରୋ
ରମାବାଣୀରାମଃ ସ୍ଫୁରଦମଳପଙ୍କେରୁହମୁଖୌଃ ।
ସୁରେନ୍ଦ୍ରୈରାରାଧ୍ୟଃ ଶ୍ରୁତିଗଣଶିଖା ଗୀତ ଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୪।

ରଥାରୂଢ଼ୋଗଚ୍ଛନ୍ ପଥିମିଳିତ ଭୂଦେବପଟଳୈଃ
ସ୍ତୁତିପ୍ରାଦୁର୍ଭାବଂ ପ୍ରତିପଦମୁପାକର୍ଣ୍ୟ ସଦୟଃ ।
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତାୟାଃ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୫।



Digitized by srujanika@gmail.com

ପରଂବ୍ରହ୍ମାପୀଡଃ କୁବଳୟଦଳୋତ୍‌ଫୁଲ୍ଲନୟନୋ
ନିବାସୀ ନୀଳାଦ୍ରୌ ନିହିତ ଚରଣୋନନ୍ତଶିରସି ।
ରସାନନ୍ଦୋ ରାଧାସରସବପୁରାଲିଙ୍ଗନସୁଖୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୬।

ନ ବୈ ଯାଚେରାଜ୍ୟଂ ନ ଚ କନକ ମାଣିକ୍ୟବିଭବଂ
ନ ଯାଚେହଂ ରମ୍ୟାଂ ସକଳଜନକାମ୍ୟାଂ ବରବଧୂମ୍ ।
ସଦୀ କାଳେ କାଳେ ପ୍ରମଥପତିନା ଗୀତ ଚରିତୋ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୭।

ହର ତ୍ୱଂ ସଂସାରଂ ଦ୍ରୁତତରମସାରଂ ସୁରପତେ
ହର ତ୍ୱଂ ପାପାନାଂ ବିତତିମପରାଂ ଯାଦବପତେ ।
ଅହୋ ଦୀନାନାଥୋ ନିହିତମଚଳଂ ନିଶ୍ଚିତମିଦଂ
ଜଗନ୍ନାଥଃ ସ୍ୱାମୀ ନୟନପଥଗାମୀ ଭବତୁ ମେ ।୮।

ଜଗନାଥାଷ୍ଟକମ୍ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସଗଚ୍ଛତି ।୯।

*।। ଇତି ଶ୍ରୀଶଙ୍କରାଚାର୍ଯ୍ୟକୃତଂ ଶ୍ରୀଜଗନାଥାଷ୍ଟକଂ ସମ୍ପୂର୍ଣ୍ଣମ୍ ।।*

*ଉପପଦ୍ ପାଦ ଆଦି ଶଙ୍କରାଚାର୍ଯ୍ୟ*





Digitized by srujanika@gmail.com



# ହନୁମାନ ଚାଳିସା

## -ଦୋହା-

ଶ୍ରୀ ଗୁରୁ ଚରନ ସରୋଜ ରଜ     ନିଜ ମନୁ ମୁକୁରୁ ସୁଧାରି,
ବରନଉଁ ରଘୁବର ବିମଳ ଜସୁ     ଜୋ ଦାୟକୁ ଫଲ ଚାରି ।
ବୁଦ୍ଧିହୀନ ତନୁ ଜାନିକେ     ସୁମିରୌଂ ପବନ-କୁମାର,
ବଲ ବୁଦ୍ଧି ବିଦ୍ୟା ଦେହୁ ମୋହିଂ     ହରହୁ କଲେସ ବିକାରି ।

## -ଚୌପାଇ-

ଜୟ ହନୁମାନ ଜ୍ଞାନ ଗୁନ ସାଗର,     ଜୟ କପୀସ ତିହୁଁ ଲୋକ ଉଜାଗର
ରାମ ଦୂତ ଅତୁଳିତ ବଲଧାମା,     ଅଞ୍ଜନି ପୁତ୍ର ପବନ ସୁତ ନାମା ।
ମହାବୀର ବିକ୍ରମ ବଜରଂଗୀ,     କୁମତି ନିବାର ସୁମତି କେ ସଂଗୀ ।
କଞ୍ଚନ ବରନ ବିରାଜ ସୁବେସା,     କାନନ କୁଂଡଲ କୁଂଚିତ କେସା ।
ହାଥ ବଜ୍ର ଔର ଧ୍ୱଜା ବିରାଜୈ,     କାଁନ୍ଧେ ମୁଁଜ ଜନେଉ ସାଜୈ ।
ସଙ୍କର ସୁଓ୍ୱନ କେସରୀ ନନ୍ଦନ,     ତେଜ ପ୍ରତାପ ମହା ଜଗ ବଂଦନ ।
ବିଦ୍ୟାଓ୍ୱାନ ଗୁନି ଅତି ଚାତୁର ,     ରାମ କାଜ କରିବେ କୋ ଆତୁର ।



Digitized by srujanika@gmail.com

ପ୍ରଭୁ ଚରିତ୍ର ସୁନିବେ କୋ ରସିୟା, ରାମ ଲଖନ ସୀତା ମନ ବସିୟା ।
ସୂକ୍ଷ୍ମ ରୂପ ଧରି ସିୟହିଂ ଦିଖାୱା, ବିକଟ ରୂପ ଧରି ଲଙ୍କ ଜରାୱା ।
ଭୀମ ରୂପ ଧରି ଅସୁର ସଂହାରେ, ରାମଚନ୍ଦ୍ର କେ କାଜ ସଁୱାରେ ।
ଲାୟ ସଜୀବନ ଲଖନ ଜିୟାୟେ, ଶ୍ରୀ ରଘୁବୀର ହରଷି ଉର ଲାୟେ ।
ରଘୁପତି କୀହ୍ନୀ ବହୁତ ବଡାଈ, ତୁମ ମମ ପ୍ରିୟ ଭରତ ହି ସମ ଭାଈ ।
ସହସ ବଦନ ତୁହ୍ମରୋ ଯଶ ଗାୱୈଂ, ଅସ କହି ଶ୍ରୀପତି କଂଠ ଲଗାୱୈଂ ।
ସନକାଦିକ ବ୍ରହ୍ମାଦି ମୁନୀସା, ନାରଦ ସାରଦ ସହିତ ଅହିସା ।
ଜମ କୁବେର ଦିଗପାଲ ଜହାଁ ତେ, କବି କୋବିଦ କହି ସକୈ କହାଁ ତେ ।
ତୁମ ଉପକାର ସୁଗ୍ରୀୱ ହିଂ କୀହ୍ନା, ରାମ ମିଲାୟ ରାଜ ପଦ ଦୀହ୍ନା ।
ତୁହ୍ମରୋ ମନ୍ତ୍ର ବିଭୀସନ ମାନା, ଲଁକେଶ୍ୱର ଭୟେ ସବ ଜଗ ଜାନା ।
ଜୁଗ ସହସ୍ର ଯୋଜନ ପର ଭାନୂ, ଲୀଲ୍ୟୋ ତାହି ମଧୁର ଫଳ ଜାନୂ ।
ପ୍ରଭୁ ମୁଦ୍ରିକା ମେଲି ମୁଖ ମାହୀଂ, ଜଲଧି ଲାଁଘିଗୟେ ଅଚରଜ ନାହୀଂ ।
ଦୁର୍ଗମ କାଜ ଜଗତ କେ ଜେତେ, ସୁଗମ ଅନୁଗ୍ରହ ତୁହ୍ମରେ ତେତେ ।
ରାମ ଦୁଆରେ ତୁମ ରଖୱାରେ, ହୋତ ନ ଆଜ୍ଞା ବିନୁ ପୈସାରେ ।
ସବ୍ ସୁଖ ଲହୈ ତୁହ୍ମାରୀ ସରନା, ତୁମ ରକ୍ଷକ କାହୁ କୋ ଡ଼ରନା ।
ଆପନ ତେଜ ସହ୍ମାରୋ ଆପୈ, ତିନୋଂ ଲୋକ ହାଁକ ତେଂ କାଁପୈ ।
ଭୂତ ପିଶାଚ ନିକଟ ନହିଂ ଆୱୈ, ମହାବୀର ଜବ ନାମ ସୁନାୱୈ ।
ନାସୈ ରୋଗ ହରୈ ସବ ପିରା, ଜପତ ନିରଂତର ହନୁମତ ବୀରା ।
ସଙ୍କଟ ତେଂ ହନୁମାନ ଛୁଡ଼ାୱୈ, ମନ କ୍ରମ ବଚନ ଧ୍ୟାନ ଜୋ ଲାୱୈ ।
ସବ ପର ରାମ ତପସ୍ୱୀ ରାଜା, ତିନ କେ କାଜ ସକଲ ତୁମ ସାଜା ।



Digitized by srujanika@gmail.com

ଔର ମନୋରଥ ଜୋ କୋଇ ଲାଓୖ, ସୋଇ ଅମିତ ଜୀବନ ଫଲ ପାଓ୍ୱୖ ।
ଚାରୋଂ ଯୁଗ ପରତାପ ତୁମ୍ହାରା, ହୈ ପରସିଦ୍ଧ ଜଗତ ଉଜିୟାରା ।
ସାଧୁସଂତ କେ ତୁମ ରଖଓ୍ୱାରେ, ଅସୁର ନିକଂନ୍ଦନ ରାମ ଦୁଲାରେ ।
ଅଷ୍ଟ ସିଦ୍ଧି ନୌ ନିଧି କେ ଦାତା, ଅସ ବର ଦୀନ ଜାନୁକୀ ମାତା ।
ରାମ ରସାୟନ ତୁହ୍ମରେ ପାସା, ସଦା ରହୋ ରଘୁପତି କେ ଦାସା ।
ତୁହ୍ମରେ ଭଜନ ରାମ କୋ ପାଓ୍ୱୖ, ଜନମ ଜନମ କେ ଦୁଃଖ ବିସରାଓ୍ୱୖ ।
ଅଁନ୍ତ କାଲ ରଘୁବର ପୁର ଜାଈ, ଜହାଁ ଜନ୍ମ ହରିଭକ୍ତ କହାଈ ।
ଔର ଦେବତା ଚିତ୍ତ ନ ଧରଈ, ହନୁମତ ସେଇ ସର୍ବ ସୁଖ କରଈ ।
ସଙ୍କଟ କଟୈ ମିଟୈ ସବ ପୀରା, ଜୋ ସୁମିରେ ହନୁମତ ବଲବୀରା ।
ଜୈ ଜୈ ଜୈ ହନୁମାନ ଗୋସାଁଇ, କୃପା କରହୁ ଗୁରୁ ଦେବ କି ନାଇଁ ।
ଜୋ ସତବାର ପାଠ କର କୋଈ, ଛୁଟହି ବଂଦି ମହା ସୁଖ ହୋଈ ।
ଜୋ ୟହ ପଢ଼େ ହନୁମାନ ଚାଲୀସା, ହୋୟ ସିଦ୍ଧି, ସାଖୀ ଗୌରୀସା ।
ତୁଲସୀଦାସ ସଦା ହରି ଚେରା, କୀଜୈ ନାଥ ହୃଦୟ ମହଁ ଡ଼େରା ।

-ଦୋହା-

ପଓ୍ୱନ ତନୟ ସଙ୍କଟ ହରନ ମଙ୍ଗଲ ମୂରତୀ ରୂପ ।
ରାମ ଲଖନ ସୀତା ସହିତ ହୃଦୟ ବସହୁ ସୁରଭୂପ ।।

*ଗୋସ୍ୱାମୀ ତୁଲସୀଦାସ*
*(ଦ୍ୱାଦଶ ଶତାବ୍ଦୀ)*





Digitized by srujanika@gmail.com



ମା ମଙ୍ଗଳାଙ୍କ ପ୍ରଚାର ଓ ପ୍ରସାର ପାଇଁ
ଯେ କୌଣସି ବଦାନ୍ୟ ବ୍ୟକ୍ତି ନିଜ ସାଧ୍ୟମତେ
ଅନୁଦାନ ରାଶି ନିମ୍ନ ଠିକଣାରେ ପଠାଇ ପାରିବେ ।

**ଠିକଣା :**

**ମା ମଙ୍ଗଳା ମନ୍ଦିର ପରିଚାଳନା ସମିତି**
ମାର୍ଫତ ପ୍ରଦୀପ କୁମାର ସାହୁ (ଲୁଲୁ)
ସା:/ପୋ: ଖଡ଼ଗ ପ୍ରସାଦ
ଜି. ଢେଙ୍କାନାଳ (ଓଡ଼ିଶା) ୭୫୯୧୨୧

ଫୋନ :
୦୬୭୩୨ - ୨୫୮୦୭୬ (ଘର), ୨୫୮୦୨୫ (ଅଫିସ)
ମୋବାଇଲ : ୯୮୬୧୦୪୨୯୩୩

Digitized by srujanika@gmail.com